# କଳିଙ୍ଗ ସମ୍ରାଟ

# ଖାରବେଳ

ଲେଖକ

ଶ୍ରୀ ରମାକାନ୍ତ ମିଶ୍ର, ଏମ୍. ଏ.

ଜି. ମ୍ୟୁଜ୍., ରାଷ୍ଟ୍ରଭଣ୍ଡାରନ୍ଦ

ଜନଶକ୍ତି ପୁସ୍ତକାଳୟ

ରଚନା

**ଶ୍ରୀ ରମାକାନ୍ତ ମିଶ୍ର,** ଏମ୍. ଏ.

ବି. ମ୍ୟୁଜ୍., ସଙ୍ଗୀତାଚାର୍ଯ୍ୟ,

ପ୍ରକାଶକ :

ଏନ୍. ଏଲ୍. ଗୁପ୍ତା

**ଜନଶକ୍ତି ପୁସ୍ତକାଳୟ**

ବିନୋଦବିହାରୀ, କଟକ-୨

ପ୍ରଥମ ପ୍ରକାଶ :

ମାର୍ଚ୍ଚ—୧୯୮୫

**ମୂଲ୍ୟ-ଟ ୨-୦୦**

ମୁଦ୍ରକ :

**ବିମଳା ପ୍ରେସ**

ଅଲିଶା ବଜାର, କଟକ-୨

ଆଜକୁ ପ୍ରାୟ ଏକୋଇଶ ଶହ ବର୍ଷ ତଳର କଥା । ଖ୍ରୀଷ୍ଟପୂର୍ବ ୧୯୭ ଅବ୍ଦରେ ରାଜର୍ଷି ମହାରାଜା ଖାରବେଳ ଜନ୍ମ ହୋଇଥିଲେ । ଅନ୍ୟ କେତେକ ଐତିହାସିକଙ୍କ ମତରେ ସେ ଖ୍ରୀଷ୍ଟପୂର୍ବ ୨୦୭ ରେ ଜନ୍ମଗ୍ରହଣ କରିଥିବାର ଜଣାଯାଏ ।

ଓଡ଼ିଶାର ରାଜଧାନୀ ଭୁବନେଶ୍ୱରର ପଶ୍ଚିମ ଦିଗରେ ଖଣ୍ଡଗିରି ଓ ଉଦୟଗିରି ପାହାଡ଼ ବିଦ୍ୟମାନ । ସେଠାରେ ଅନେକ ଜୈନକୀର୍ତ୍ତି ରହିଅଛି । ଜୈନ ମହାବୀର ସେଠାରେ ଧର୍ମ ପ୍ରଚାର କରିବା କଥା ଇତିହାସରୁ ଜଣାପଡ଼ିଯାଏ ; ତେଣୁ ଏହା ଜୈନମାନଙ୍କର ଏକ ତୀର୍ଥ ସ୍ଥାନ ।

ଉଦୟଗିରିରେ ମହାରାଜା ଖାରବେଳ ତିଆରି କରିଥିବା ଅନେକ ଗୁମ୍ଫା ଦେଖିବାକୁ ମିଳେ । ତନ୍ମଧ୍ୟରେ ହାତୀଗୁମ୍ଫା, ସ୍ୱର୍ଗପୁରୀ ତଥା ମଞ୍ଚପୁରୀ ଗୁମ୍ଫା ଆଦି ପ୍ରଧାନ । ହାତୀଗୁମ୍ଫାର ପଥର ଦେହରେ ଖାରବେଳଙ୍କ ରାଜତ୍ୱର ଘଟଣାବଳୀ କ୍ରମିକ ଭାବରେ ଖୋଦିତ ହୋଇଅଛି ।

ସମ୍ରାଟ ଅଶୋକଙ୍କ ମୃତ୍ୟୁ ପରେ ମଗଧ ସାମ୍ରାଜ୍ୟ ଦୁର୍ବଳ ହୋଇ ପଡ଼ିଥିଲା । ସେହିସମୟରେ କଳିଙ୍ଗରେ ଚେଡ

ବା ଐର ବଂଶର ରାଜାମାନେ କ୍ଷମତାଶାଳୀ ହୋଇ ସ୍ୱାଧୀନ ହେଲେ । ଐର ରାଜା ଅଶୋକଙ୍କ ମୃତ୍ୟୁର ଷୋହଳ ବର୍ଷ ପରେ ଖ୍ରୀ: ପୂ: ୨୨୦ ଅବ୍ଦରେ କୋଶଳରୁ ଆସି କଳିଙ୍ଗ ଅଧିକାର କଲେ । ମୌର୍ଯ୍ୟମାନେ ଆଉ ତାଙ୍କୁ ବାଧା ଦେଇପାରିଲେ ନାହିଁ । ଏଠାରେ ଯେଉଁ ଐରରାଜା କଳିଙ୍ଗ ସିଂହାସନ ଅଧିକାର କଲେ, ତାଙ୍କ ନାମ ଚୈତ୍ର ଐର । ତେଣୁ ଏହି ବଂଶର ନାମ ଆଉ ଐର' ବଂଶ ନ ହୋଇ 'ଚୈତ୍ର' ବା 'ଚେତ' ବଂଶ ହେଲା । ଏହି ଚେତ ବଂଶର ରାଜାମାନେ ସୂର୍ଯ୍ୟବଂଶର ଲୋକ ବୋଲି ପରିଚୟ ଦେଉଥିଲେ ।

ଏହି ବଂଶରେ ନଅଜଣ ରାଜା ରାଜତ୍ୱ କରିଥିଲେ । ଧର୍ମରେ ରାଜ୍ୟ ଶାସନ କରୁଥିବାରୁ ଏମାନଙ୍କୁ ରାଜର୍ଷି ବୋଲି କୁହାଯାଉଥିଲା । ଏହି ରାଜାମାନଙ୍କ ଉପାଧି ହେଉଛି 'ମେଘବାହନ' ।

ଖାରବେଳ ଚୈତ୍ର ବା ଚେତ ବଂଶର ସର୍ବଶ୍ରେଷ୍ଠ ପ୍ରତାପୀ ସମ୍ରାଟ । ରାଜା ଚୈତ୍ର ହେଉଛନ୍ତି ଖାରବେଳଙ୍କ ପିତା । ସେ ୨୩ ବର୍ଷ ରାଜତ୍ୱ କରିବା ପରେ ଖାରବେଳ ଜନ୍ମ ଗ୍ରହଣ କରିଥିଲେ ।

ବାଲ୍ୟକାଳରେ ସେ ଗୁରୁଙ୍କ ଆଶ୍ରମରେ ରହି ପାଠ ପଢିଥିଲେ । ତାଙ୍କର ଭକ୍ତି ଏବଂ ବିଦ୍ୟା ଶିକ୍ଷା ପ୍ରତି ଆଗ୍ରହ

ଦେଖି ଗୁରୁ ବିସ୍ମିତ ହୋଇଥିଲେ । ଅଳ୍ପଦିନ ପରେ ସେ ଧର୍ମନୀତି ଏବଂ ରାଜନୀତି ଆଦି ବିଷୟରେ ବ୍ୟୁତ୍ପତ୍ତି ଲାଭ କଲେ । ଖ୍ରୀ·ପୂ: ୧୮୬ ଅବ୍ଦରେ ଖାରବେଳ ଯୁବରାଜ ପଦ ଗ୍ରହଣ କରି ରାଜ୍ୟଶାସନରେ ପିତାଙ୍କୁ ସାହାଯ୍ୟ କଲେ । ସେତେବେଳକୁ ଖାରବେଳଙ୍କ ବୟସ ମାତ୍ର ପନ୍ଦର ବର୍ଷ । ତାଙ୍କ ପିତା ରାଜା ଥିଲେ ମଧ୍ୟ ଶାସନର ପ୍ରତ୍ୟେକ କାର୍ଯ୍ୟ ଖାରବେଳଙ୍କୁ ବୁଝିବାକୁ ପଡ଼ୁଥିଲା । କୋଡ଼ିଏ ବର୍ଷ ବୟସ ବେଳେ ଖାରବେଳ ଶାସନ କ୍ଷେତ୍ରରେ ଖୁବ୍ ଧୁରନ୍ଧର ହୋଇପାରିଥିଲେ । ଧର୍ମନୀତିରେ ସେ ଖୁବ୍ ପାରଙ୍ଗମ ଥିଲେ ।

ସେ ଜୈନ ଧର୍ମାବଲମ୍ବୀ ଥିଲେ ; ମାତ୍ର ଅନ୍ୟାନ୍ୟ ଧର୍ମକୁ ସେ ଘୃଣା ନ କରି ଯଥେଷ୍ଟ ସମ୍ମାନ ଦେଉଥିଲେ । ଖାରବେଳଙ୍କ ୨୪ ବର୍ଷ ବୟସବେଳେ ବୁଢ଼ା ରାଜା ଚୈତ୍ର ପ୍ରାଣତ୍ୟାଗ କରିଥିଲେ ।

ଉଦୟଗିରି ହାତୀଗୁମ୍ଫାରେ ଥିବା ପଥର ଲିପିରେ ଖାରବେଳ କିପରି ବହୁରାଜ୍ୟ ଜୟକରି ସମ୍ରାଟ ବୋଲାଇଥିଲେ ତାହା ପାଲି ଭାଷାରେ ଲିଖିତ ହୋଇଛି ।

ଖ୍ରୀଷ୍ଟପୂର୍ବ ୧୬୩ ଅବ୍ଦରେ ତୋଷାଳି ନଗରୀଠାରେ ତାଙ୍କର ଶୁଭ ଅଭିଷେକ ଉତ୍ସବ ହୋଇଥିଲା । ସେ ସିଂହାସନ

ଆଟଗ୍ରହଣ କରିବା ବର୍ଷ ରାଜ୍ୟରେ ବହୁ ବିପତ୍ତି ଦେଖା-ଦେଇଥିଲା । ଭୟଙ୍କର ଝଡ଼ ତୋଫାନ ହେବା ଫଳରେ ତୋଷାଳି ଗଡ଼ର ବହୁ ଘରଦ୍ୱାର ପାଚେରୀ ଆଦି ଧ୍ୱଂସ ହୋଇଯାଇଥିଲା । ତାହା ମରାମତି କରିବାକୁ ପ୍ରାୟ ଏକବର୍ଷ ଲାଗି ଯାଇଥିଲା ।

ବହୁ ରାଜ୍ୟ ଜୟ କରି ସମ୍ରାଟ ହେବାପାଇଁ ତାଙ୍କର ପିଲାଦିନୁ ଆକାଂକ୍ଷା ରହିଥିଲା । ହାତୀଗୁମ୍ଫା ପଥରର ଲେଖା ଅନୁଯାୟୀ ରାଜତ୍ୱର ପ୍ରଥମ ତେର ବର୍ଷ ଭିତରେ ସେ ଭାରତର ଅଧିକାଂଶ ପ୍ରଦେଶ ଜୟକରି 'ରାଜଚକ୍ରବର୍ତ୍ତୀ' ହୋଇଥିଲେ ।

ଉତ୍କଳର ପଶ୍ଚିମରେ କୋଶଳ ରାଜ୍ୟକୁ ଲାଗି ମୂଷିକ ରାଜ୍ୟ ଥିଲା । ମୂଷିକ ରାଜ୍ୟର ଲୋକେ ବେଳେବେଳେ ଉତ୍କଳ ଭିତରେ ପଶି ଲୁଟ୍‌ପାଟ୍ କରୁଥିଲେ । ଗଞ୍ଜାମ ଜିଲାର ଘୁମୁସର ପ୍ରଭୃତି ସାମନ୍ତ ରାଜ୍ୟ ଅଞ୍ଚଳର ପାଖାପାଖି ଥିବାରୁ ସେହି ମୂଷିକ ରାଜ୍ୟର ଲୋକେ ମଧ୍ୟ ନାନା ଉତ୍ପାତ କରୁଥିଲେ । ଉତ୍କଳର ମହତ୍ତ୍ୱ ବଜାୟ ରଖିବା ପାଇଁ ଖାରବେଳ, ମୂଷିକ ରାଜ୍ୟ ବିରୁଦ୍ଧରେ ପ୍ରଥମେ ଯୁଦ୍ଧ ଘୋଷଣା କରିଥିଲେ ।

ସେହି ସମୟରେ ଆନ୍ଧ୍ର ରାଜ୍ୟରେ ସାତକର୍ଣ୍ଣୀ ନାମକ ଜଣେ ପ୍ରତାପୀ ରାଜା ଥିଲେ । ଖାରବେଳ ସୈନ୍ୟ ସାମନ୍ତ

ଯେଉଁ ତାଙ୍କ ରାଜ୍ୟସୀମା ପାର ହେଲାବେଳେ ସେ ଆସି ତାଙ୍କ ପଥରୋଧ କଲେ । ତେଣୁ ମୂଷିକ ରାଜାଙ୍କ ସହିତ ଯୁଦ୍ଧ ହେବା ପୂର୍ବରୁ ଆନ୍ଧ୍ରମାନଙ୍କ ସହିତ ଖାରବେଳଙ୍କର ପ୍ରବଳ ଯୁଦ୍ଧ ହୋଇଥିଲା । ଏଥିରେ ସାତକର୍ଣ୍ଣୀ ପରାସ୍ତ ହେଲେ । ତାପରେ ମୂଷିକ ରାଜ୍ୟରେ ପଶି ଅକ୍ଳେଶରେ ତାହା ଜିଣିଲେ । ଖ୍ରୀ:ପୂ: ୧୬୧ ଅବ୍ଦରେ ମୂଷିକ ରାଜ୍ୟ ଉତ୍କଳ ସଙ୍ଗେ ମିଶିଲା ।

ଆଜିକାଲିର ମହାରାଷ୍ଟ୍ରକୁ ପୂର୍ବେ 'ରାଷ୍ଟ୍ରିକ' ଓ ବେରାର ରାଜ୍ୟକୁ 'ଭୋଜକ' ରାଜ୍ୟ ବୋଲି କହୁଥିଲେ । ସେତେବେଳେ ଏହି ଦୁଇଟି ରାଜ୍ୟ ଧନ ଜନ ଏବଂ ଗୌରବରେ ପରିପୂର୍ଣ୍ଣ ଥିଲା । ଏହି ଦୁଇ ରାଜ୍ୟର ରାଜାମାନେ ଖାରବେଳଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାରୁ ସେଠାକୁ ଖାରବେଳ ସୈନ୍ୟ ସାମନ୍ତ ନେଇ ବାହାରିଲେ । ସାମାନ୍ୟ କେତୋଟି ଯୁଦ୍ଧରେ ବେରାର ଓ ମହାରାଷ୍ଟ୍ରକୁ ପରାସ୍ତ କରି ସେ ଉତ୍କଳର ଗୌରବ ରକ୍ଷା କରିଥିଲେ ।

ସମଗ୍ର ଭାରତ ସମ୍ରାଟ ହେବା ଆଶାରେ ଖାରବେଳ ଦକ୍ଷିଣ ଓ ପଶ୍ଚିମ ଭାରତରେ ରାଜ୍ୟ ପରେ ରାଜ୍ୟ ଜୟ କରିବାରେ ଲାଗିଥାନ୍ତି । ଏପର୍ଯ୍ୟନ୍ତ ସେ ଉତ୍ତର ଭାରତ ଆଡ଼କୁ ଦୃଷ୍ଟି ପକାଇ ନ ଥାନ୍ତି । ସେତେବେଳେ ପୁଷ୍ପମିତ୍ର ମଗଧର ସମ୍ରାଟ ଥିଲେ । ତାଙ୍କ ନିଜର ଅସୀମ ଶକ୍ତି ଓ ସାହସ ଥିଲା ।

ରାଜ୍ୟରେ ଧନୁର୍ଦ୍ଧର ବୀରମାନେ ମଧ୍ୟ ବାସ କରୁଥିଲେ । ପୁଷ୍ପମିତ୍ର ରାଜଚକ୍ରବର୍ତ୍ତୀ ଉପାଧି ଧାରଣ କରିଥିଲେ । ଖାରବେଳ ଦେଖିଲେ, ସମ୍ରାଟ୍ ପୁଷ୍ପମିତ୍ରଙ୍କୁ ପରାସ୍ତ ନ କଲେ ସେ ଭାରତର ରାଜଚକ୍ରବର୍ତ୍ତୀ ହେବା ଏକାନ୍ତ ଅସମ୍ଭବ; ତେଣୁ ମଗଧ ଆକ୍ରମଣ ସକାଶେ ସେ ସୈନ୍ୟବାହିନୀ ଯୋଗାଡ଼ କରିବାରେ ଲାଗିପଡ଼ିଲେ ।

ନନ୍ଦ ବଂଶର ରାଜାମାନେ ଏମାନଙ୍କୁ ପ୍ରଥମେ କଳିଙ୍ଗ ରାଜ୍ୟରୁ ତଡ଼ି ନିଜେ କଳିଙ୍ଗ ଅଧିକାର କରିଥିଲେ । ସେତିକିବେଳେ ଜଣେ ନନ୍ଦରାଜା ଖଣ୍ଡଗିରିଠାରୁ କେତେକ ଜୈନ ଦେବମୂର୍ତ୍ତି ନେଇଯାଇ ମଗଧର ରାଜ୍ୟଗୃହଠାରେ ସେହି ସମସ୍ତ ମୂର୍ତ୍ତି ରଖିଥିଲେ ।

ରାଜା ଖାରବେଳ ଏହା ଜାଣିପାରି ବିଶେଷ ଦୁଃଖିତ ହେଲେ; ତେଣୁ ମଗଧ ବିରୁଦ୍ଧରେ ଅଭିଯାନ କରିବା ପାଇଁ ସେ ପ୍ରସ୍ତୁତ ହେଲେ । ଯେକୌଣସି ପ୍ରକାରେ ସେହି ଦେବମୂର୍ତ୍ତି ଗୁଡ଼ିକୁ ଉତ୍କଳକୁ ଅଣାଯିବା ଉଚିତ ।

ତାଙ୍କ ରାଜତ୍ୱର ଆଠବର୍ଷ ପରେ ଖ୍ରୀଷ୍ଟପୂର୍ବ ୧୭୫ ଅବ୍ଦରେ ଏହି ଯୁଦ୍ଧ ଘୋଷଣା କରାଗଲା ।

ଖାରବେଳ ମଗଧ ରାଜ୍ୟର ଗୋରଖଗିରି ନାମକ ଗୋଟିଏ ସୁଦୃଢ଼ ଦୁର୍ଗ ସିଧାସଳଖ ଆକ୍ରମଣ କଲେ ।

ରାଜଧାନୀ ପାଟଳିପୁତ୍ରକୁ ଦକ୍ଷିଣଦିଗର ବାହାର ଶତ୍ରୁମାନଙ୍କ ହାତରୁ ରକ୍ଷା କରିବାପାଇଁ ସେହି ଦୁର୍ଗ ନିର୍ମିତ ହୋଇଥିଲା । ମଗଧ ସୈନ୍ୟମାନେ ଦିନରାତି ଏହି ଦୁର୍ଗକୁ ଜଗି ରହୁଥାନ୍ତି ।

କିନ୍ତୁ ଉତ୍କଳ ସୈନ୍ୟବାହିନୀ ଆଗରେ ସେମାନଙ୍କର ସକଳ ଶକ୍ତି ସାମର୍ଥ୍ୟହୀନ ଗଣ୍ୟ ହେଲା । ଯୁଦ୍ଧରେ ଦୁର୍ଗଟି ଧ୍ୱଂସ ପାଇଲା ।

ଅବଶ୍ୟ ଏହି ଯୁଦ୍ଧରେ ପ୍ରବଳପ୍ରତାପୀ ପୁଷ୍ପମିତ୍ରଙ୍କ ସହିତ ଖାରବେଳଙ୍କର ମୁହାଁମୁହିଁ ଯୁଦ୍ଧ ହୋଇ ନ ଥିଲା । ସେ ପ୍ରଥମେ ଖାରବେଳଙ୍କୁ ଖାତିର କରୁ ନ ଥିଲେ । କିନ୍ତୁ ରାଜ୍ୟର ଦକ୍ଷିଣ ଦ୍ୱାର ଗୋରଖଗିରି ଦୁର୍ଗ ଉତ୍କଳୀୟ ସେନାଙ୍କ ଦ୍ୱାରା ଧ୍ୱଂସ ପାଇବା ଶୁଣି ସେ ବିବ୍ରତ ହୋଇପଡ଼ିଲେ । ତାପରେ ସେ ରାଜଧାନୀ ଛାଡ଼ି ଯାଇ ମଥୁରାଠାରେ ଆଶ୍ରୟ ନେଲେ ।

ପୁଷ୍ପମିତ୍ର ଭାବିଥିଲେ, ଖାରବେଳ ତାଙ୍କୁ ଆକ୍ରମଣ କଲେ ମଥୁରାଠାରେ ରହି ଯୁଦ୍ଧ ଚଳାଇବା ସୁବିଧାଜନକ ହେବ ; ତେଣୁ ବହୁ ସୈନ୍ୟ ସାମନ୍ତଙ୍କୁ ସେ ମଥୁରାଗଡ଼ଠାରେ ଜଗାଇ ରଖିଥିଲେ ।

ଗୋରଖଗିରିଠାରେ ଉତ୍କଳର ବିଜୟ ପତାକା ଉଡ଼ାଇ ଖାରବେଳ କଳିଙ୍ଗକୁ ବାହୁଡ଼ି ଆସିଲେ । ନନ୍ଦରାଜାମାନେ

ଖଣ୍ଡଗିରି ଠାରୁ ଲୁଣ୍ଠି କରି ନେଇଥିବା ଦେବମୂର୍ତ୍ତି ସବୁ ମଧ୍ୟ ସଙ୍ଗରେ ଆଣି ନିଜ ରାଜଧାନୀ ତୋଷାଳୀଠାରେ ଏବଂ ଖଣ୍ଡଗିରି ପାହାଡରେ ପୁନଃ ପ୍ରତିଷ୍ଠା କରାଇଥିଲେ । ଏଥର ସେ ଆଉ ମଗଧର କୌଣସି ଦୁର୍ଗ ଆକ୍ରମଣ ପାଇଁ ମନ ବଳାଇ ନଥିଲେ ।

କିନ୍ତୁ ମଗଧ ରାଜ୍ୟ ଜୟ ନ କରିବା ପର୍ଯ୍ୟନ୍ତ ତାଙ୍କ ପ୍ରାଣରେ ଶାନ୍ତି ଆସିଲା ନାହିଁ । ଏ ଭିତରେ ଚାରି ପାଞ୍ଚବର୍ଷ କଟିଗଲା । ପୁଣି ସେ ସମଗ୍ର ଉତ୍ତର ଭାରତ ବିଜୟରେ ବାହାରିଲେ । ବହୁ ସୈନ୍ୟସାମନ୍ତ ଅଭିଯାନରେ ବାହାରିଲେ । ଏଥର ରଣସଜ୍ଜା ଅତୀବ ଭୟଙ୍କର ଥିଲା ।

ଖାର ବେଳ ପ୍ରଥମେ ମଗଧ ଆକ୍ରମଣ ନ କରି ଉଳବାଟେ ସୀମାନ୍ତ ପ୍ରଦେଶରେ ଯାଇ ପହଞ୍ଚିଲେ । ସେହିସବୁ ରାଜ୍ୟରେ ଥିବା ଦୁର୍ଦ୍ଧର୍ଷ ବୀର ଜାତିର ଲୋକଙ୍କୁ ଯୁଦ୍ଧରେ ପରାସ୍ତ କରିସାରି ଆଗକୁ ମାଡ଼ି ଚାଲିଲେ ।

ବାଟରେ ଗଲାବେଳେ ଖାରବେଳଙ୍କୁ କୌଣସି ରାଜା ବାଧା ଦେଲେ ନାହିଁ । ବହୁ ରାଜା ଭୟରେ ତାଙ୍କର ଅଧୀନତା ସ୍ୱୀକାର କଲେ । ଏହାପରେ ସେ ଯାଇ ପଞ୍ଜାବ ପ୍ରଦେଶରେ ପହଞ୍ଚିଲେ । ସେଠାକାର ରାଜା ମଧ୍ୟ ତାଙ୍କ ବୀରତ୍ୱ ଏବଂ ପ୍ରଭାବ ସମ୍ପର୍କରେ ଶୁଣି ଆଉ ଯୁଦ୍ଧକୁ ଆଗେଇଲେ

ନାହିଁ । ସେଠାରେ ମଧ ଉତ୍କଳର ଜୟବାନା ଅକ୍ଳେଶରେ ଉଡ଼ିଲା ।

ଖାରବେଲ ପଞ୍ଜାବ ଭିତରେ ପଶି, ଗଙ୍ଗାନଦୀ ପାର ହୋଇ ଆହୁରି ଉତ୍ତରକୁ ଅଗ୍ରସର ହେଲେ । ତାପରେ ଗଙ୍ଗାନଦୀର ଉତ୍ତରକଳ କାଟି ବୁଲି ଆସି ମଗଧ ରାଜ୍ୟରେ ପହଞ୍ଚିଲେ । ବଡ଼ ବଡ଼ ଯୁଦ୍ଧ ହସ୍ତୀମାନଙ୍କ ସାହାଯ୍ୟରେ ତାଙ୍କର ସୈନ୍ୟସାମନ୍ତମାନେ ଗଙ୍ଗାନଦୀ ପାର ହୋଇଥିଲେ ।

ମଗଧର ରାଜଧାନୀ ପାଟଳିପୁତ୍ର ସେହି ସମୟରେ ଅତି ସମୃଦ୍ଧିଶାଳୀ ଏବଂ ଗୌରବମୟ ନଗରୀ ଥିଲା । ଶତ୍ରୁ କେବେହେଲେ ସେଠାରେ ପାଦ ଦେଇ ନ ଥିଲେ ।

ଖାରବେଲଙ୍କ ମଗଧ ଆକ୍ରମଣ, ମଗଧ ଇତିହାସରେ ଏକ ସଂପୂର୍ଣ୍ଣ ନୂତନ ଘଟଣା । ସେପର୍ଯ୍ୟନ୍ତ କେହିହେଲେ ମଗଧ ସିଂହାସନକୁ ଜୟକରିବା ପାଇଁ ଉଦ୍ୟମ କରି ନ ଥିଲେ ।

ଉତ୍କଳ ସମ୍ରାଟ୍ ଖାରବେଲ ହିଁ ଏ ଦିଗରେ ପ୍ରଥମ ଥିଲେ ।

ଆକ୍ରମଣ ସମୟରେ ମଗଧରାଜ ପୁଷ୍ପମିତ୍ର ପାଟଳି-ପୁତ୍ରଠାରେ ଥିଲେ । ପ୍ରଥମ କିଛିଦିନ ଖାରବେଲଙ୍କ ସୈନ୍ୟ ସାମନ୍ତଙ୍କୁ ସେ ପ୍ରବଳ ଭାବେ ଆକ୍ରମଣ କଲେ । ରଜ୍ୟସାରା

ଯୁଦ୍ଧର ଭୟାବହତା ଦେଖି ଆତଙ୍କ ଖେଳଗଲା । ଯୁଦ୍ଧ ଶେଷରେ ପୋକମାଛି ପରି ମଗଧ ସୈନ୍ୟମାନେ ମରି ଶୋଇଲେ । ତାପରେ ସମ୍ରାଟ ପୁଷ୍ପମିତ୍ର, ଉତ୍କଳ ସମ୍ରାଟଙ୍କ ପାଖରେ ମୁଣ୍ଡ ନୁଆଁଇବାକୁ ବାଧ୍ୟହେଲେ ।

ମଗଧ ରାଜ୍ୟ କଳିଙ୍ଗର ଅଧୀନକୁ ଆସିଲା । ସେଠାରୁ ଅପାର ଧନସଂପଦ ଲୁଟିହେଲା । ଏହାପରେ ମଗଧ ଆଉ ଭାରତର ସର୍ବାଧିକ କ୍ଷମତାଶାଳୀ ରାଜ୍ୟ ରୂପେ ପରିଚିତ ହେଲା ନାହିଁ ।

ସେହିଦିନଠାରୁ ସମଗ୍ର ଭାରତବର୍ଷରେ ଖାରବେଳ ରାଜାଧିରାଜରୂପେ ଗଣ୍ୟ ହେଲେ ।

ମଗଧ ବିଜୟର ପରବର୍ଷ ସମ୍ରାଟ ଖାରବେଳ ପାଣ୍ଡ୍ୟ ନାମକ ଏକ ବିରାଟ ରାଜ୍ୟ ଜୟ କରିଥିଲେ । ଏହି ରାଜ୍ୟ ଦକ୍ଷିଣ ଭାରତରେ କୁମାରିକା ଅନ୍ତରୀ କୁ ଲାଗିଥିଲା । ଏହା ଜୟ କରିବା ପରେ ଖାରବେଳଙ୍କ ରାଜ୍ୟର ସୀମା ଉତ୍ତରରେ ହିମାଳୟ ପାଦ ଦେଶରୁ ଭାରତର ଶେଷ ସୀମା କୁମାରିକା ପର୍ଯ୍ୟନ୍ତ ବ୍ୟାପିଯାଇଥିଲା । ପାଣ୍ଡ୍ୟ ରାଜ୍ୟ ଜୟ ଫଳରେ ଖାରବେଳ ଅନେକ ହାତୀ ଏବଂ ବଡବଡ଼ ଜାହାଜ ଆଦି ପାଇଥିଲେ ।

ସେତେବେଳକୁ ଉତ୍କଳ ଉନ୍ନତିର ଚରମ ସୀମାରେ ଉପନୀତ ହୋଇସାରିଥିଲା । ଭାରତର ତିନି ପାଖରେ ଥିବା

ସମୁଦ୍ର ଉପରେ କଳିଙ୍ଗର ଜାହାଜ ବିଚରଣ କରୁଥିଲା । ଏ ଭାରତର ବଡବଡ଼ ସହର ତଥା ପାଣ୍ଡ୍ୟ, ମହାରାଷ୍ଟ୍ର, ପଞ୍ଜାବ ପ୍ରଭୃତି ଦୂରବର୍ତ୍ତୀ ସ୍ଥାନମାନଙ୍କରେ କଳିଙ୍ଗର ବେପାରୀମାନେ ବାଣିଜ୍ୟ ବ୍ୟବସାୟ କରୁଥାନ୍ତି । ପଶ୍ଚିମରେ ଆଫଗାନିସ୍ଥାନ, ପାରସ୍ୟ ପର୍ଯ୍ୟନ୍ତ ମଧ୍ୟ ଏ ଦେଶର ବେପାର ଚାଲୁଥିଲା । ଜାଭା, ସୁମାତ୍ରା ଓ ବୋର୍ଣ୍ଣିଓ ଆଦି ଦ୍ୱୀପମାନଙ୍କୁ ଆମ ଦେଶର ବେପାରୀମାନେ ଯାଇ ବ୍ୟବସାୟ କରୁଥିଲେ ।

ଭାରତ ଦିଗ୍‌ବିଜୟ କରିବା ପରେ ସମ୍ରାଟ ଖାରବେଳ ଦୂର ବିଦେଶରେ ଯାଇ ଆଉ ଏକ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଥିଲେ । ଆମ ଦେଶର ଦଳେ ବଣିକ ପଶ୍ଚିମ ସମୁଦ୍ର-ଆଡେ ବେପାର କରିବାକୁ ଯାଉଥିଲେ । ସେମାନେ ଆରବ ସାଗର ଦେଇ କୂଳେକୂଳେ ବୁଲି ସିନ୍ଧୁ ଦେଶ ବାଟେ ପାରସ୍ୟ ଦେଶକୁ ଯାଉଥିବା ସମୟରେ ହଠାତ୍ ଏକ ବିପଦର ସମ୍ମୁଖୀନ ହେଲେ ।

ବକ୍‌ଟ୍ରିୟା ରାଜ୍ୟର ରାଜା ସେମାନଙ୍କର ଜାହାଜସବୁ ଲୁଟି କରିନେଲେ ଏବଂ ଆଗକୁ ଯିବାପାଇଁ ଆଉ ବାଟ ଛାଡ଼ିଲେ ନାହିଁ । ତେଣୁ ବେପାରୀମାନେ ବହୁ କଷ୍ଟରେ ନିଜ ରାଜ୍ୟକୁ ଫେରିଆସି ସବୁକଥା ଖାରବେଳଙ୍କୁ ଜଣାଇଲେ ।

ଏହା ଶୁଣି ଖାରବେଳ କ୍ରୋଧରେ ଅସ୍ଥିର ହୋଇପଡ଼ିଲେ । ରାଜ୍ୟ ପ୍ରତି ଏହା ଏକ ବରାଟ ଅପମାନ । ସ୍ୱରାଜ୍ୟର ମାନମହତ୍ତ୍ୱକୁ ବଜାୟ ରଖିବା ପାଇଁ ସେ ବକ୍‌ଟ୍ରିୟା ରାଜାଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ବାହାରିଲେ । ଏହି ଯୁଦ୍ଧରେ ପାଣ୍ଡ୍ୟ ଯୁବରାଜ ମଧ୍ୟ ଯୋଗଦେଲେ ।

ଗ୍ରୀକବୀର ଅଲେକଜାଣ୍ଡାର ଭାରତ ଜୟ କରିବାକୁ ଆସିବା ସମୟରେ ଆଫଗାନିସ୍ତାନ ଭାରତବର୍ଷ ମଧ୍ୟରେ ଥିଲା । ଅଲେକ୍‌ଜାଣ୍ଡାର ଆଫଗାନିସ୍ତାନ ରାଜ୍ୟକୁ ଜୟ କରିଥିଲେ । ତାଙ୍କର ମୃତ୍ୟୁ ପରେ ତାଙ୍କ ସୈନ୍ୟମନ୍ତ୍ରମାନେ ମିଶି ଆଫଗାନିସ୍ତାନ ଓ ପାରସ୍ୟର କେତେକ ଅଂଶ ମିଶାଇ ଏକ ନୂଆ ରାଜ୍ୟ ଗଢ଼ିଥିଲେ । ସେହି ନୂଆ ରାଜ୍ୟର ନାମ ହେଲା ବକ୍‌ଟ୍ରିୟା ବା ବକନ୍ତର । ଏହି ବକ୍‌ଟ୍ରିୟା ରାଜ୍ୟର ରାଜା ଡ଼ିମେଟ୍ରିଅସ୍ ଆମ ଦେଶର ବଣିକମାନଙ୍କୁ ବାଟରେ ବାଧାଦେଇ ଅପମାନ ଦେଇଥିଲେ ।

ବର୍ତ୍ତମାନର ଆଫଗାନିସ୍ତାନର ପୂର୍ବ ଅଞ୍ଚଳର ନାମ ସେତେବେଳେ ବଜର୍ ଥିଲା । ସିନ୍ଧୁ ଦେଶର ପଶ୍ଚିମ ସୀମାକୁ ଏହି ବଜର୍ ରାଜ୍ୟ ଲାଗିଥିଲା ।

ରାଜା ଡିମେଟ୍ରିଅସ୍ ଆଖପାଖରେ ସବୁ ରାଜ୍ୟ ଜିଣି ନିଜ ରାଜ୍ୟରେ ମିଶାଇଥିଲେ । ଏହି ବଜର୍ ରାଜ୍ୟକୁ ସେ

ଭୟଭୀତ କରି ରଖିଥାନ୍ତି । ବଜର ରାଜ୍ୟର ରାଜା ଯୁଦ୍ଧରେ ହାରି ନିଜ ରାଜଧାନୀ ଛାଡ଼ି ଅନ୍ୟତ୍ର ଚାଲିଯାଇଥିଲେ । ତାଙ୍କର ଗୋଟିଏ ଝିଅ ଥିଲା । ତାର ନାମ ଧୂଷି । ଝିଅଟିକୁ ସେ ସିନ୍ଧୁ ଦେଶର ପଟଳ ନାମକ ଏକ ନଗରରେ ଜଣେ ଧନୀ ଲୋକଙ୍କ ଘରେ ବିଶ୍ୱାସରେ ରଖାଇ ଦେଇଥାନ୍ତି । ପଟଳ ନଗର ବକ୍‌ଟ୍ରିୟା ରାଜ୍ୟର ସୀମା ପାଖକୁ ଲାଗିଥିଲା ।

ଖାରବେଳଙ୍କ ସମ୍ବନ୍ଧରେ ମିଳିଥିବା ଇତିହାସରୁ ଜଣାଯାଏ, ଏହି ଯୁଦ୍ଧ ତାଙ୍କ ଜୀବନର ଶେଷ ଯୁଦ୍ଧ ଥିଲା । ସେ ଡିମେଟ୍ରିଅସ୍‌ଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ ।

ହଜାର ହଜାର ମାଇଲ ରାସ୍ତା, ଅଗମ୍ୟ ବଣପାହାଡ଼ ଡେଇଁ ବକଟ୍ରିୟା ରାଜ୍ୟକୁ ଯିବାକୁ ହେବ । ଉତ୍କଳର ବୀର ସନ୍ତାନଗଣ ଜାତୀୟ ଗୌରବ ରକ୍ଷା କରିବା ପାଇଁ ବାହାରି ପଡ଼ିଲେ । ସୈନ୍ୟବାହିନୀ କେତେ ଦିନ, ରାତି ଚାଲିଚାଲି ଯାଇ ବକ୍‌ଟ୍ରିୟା ରାଜ୍ୟ ସୀମାରେ ପହଞ୍ଚିଲେ ।

ପଟଳ ସହର ବାହାରେ ପ୍ରଥମେ ଉତ୍କଳ ସେନାଙ୍କର ଛାଉଣି ପଡ଼ିଲା । ତାହାର ନିକଟରେ ବଜର୍ ରାଜ୍ୟ । ଏହି ରାଜ୍ୟକୁ ଜିଣିଲେ ଡିମେଟ୍ରିଅସ୍‌ଙ୍କୁ ଉପଯୁକ୍ତ ଶାସ୍ତି ଦେଇ-

ହେବ ମନେକରି ଖାରବେଳ କେତେକ ଗୋପନୀୟ କୌଶଳ ଚିନ୍ତା କରିବାରେ ଲାଗିଲେ ।

ବଜର୍ ରାଜାଙ୍କ ଝିଅ ଧୃଷି ଦୁର୍ଦ୍ଦଶାରେ ପଡ଼ି ପଟଳ ସହରର ଜଣେ ଧନୀ ବୁଢ଼ାଘରେ ଆଶ୍ରୟ ନେଇଥାନ୍ତି । ବିପଦରେ ପଡ଼ିଲେ ମଧ୍ୟ ସେ ସେହି ବୁଢ଼ାଘରେ ରହି ଧନୁର୍ବିଦ୍ୟା, ଘୋଡ଼ାଚଢ଼ା ଆଦି ଶିକ୍ଷା କରୁଥିଲେ ।

ସହର ସୀମାରେ ଗୋଟାଏ ବଡ଼ ନଈ ଥାଏ । ଅନେକ ସମୟରେ ସାଇପଡ଼ିଶାର ପିଲାମାନେ ଧୃଷିଙ୍କ ସଙ୍ଗରେ ନେଇ ସେହି ନଈକୂଳକୁ ଖେଳିବା ପାଇଁ ଯାଆନ୍ତି; କିନ୍ତୁ ଧୃଷିଙ୍କ ମନ ଖେଳରେ ଲାଗେ ନାହିଁ । ଏକୁଟିଆ ବସି କେବଳ ନାନା କଥା ଭାବନ୍ତି ।

ଧୃଷି ଯେଉଁ ବୁଢ଼ା ଘରେ ଥିଲେ, ସେ ବୁଢ଼ାକୁ ସମସ୍ତେ ମାନନ୍ତି । ରାଜା ଡିମେଟ୍ରିଅସ୍‌ଙ୍କ ଉପରେ ସମସ୍ତଙ୍କର ରାଗ ଥାଏ ; କାରଣ ତାଙ୍କ ଲୋକମାନେ ବେଳେବେଳେ ପଟଳ ସହରକୁ ଆସି ଲୁଟ୍‌ପାଟ କରିଥାନ୍ତି ।

ଡିମେଟ୍ରିଅସଙ୍କ ବିରୁଦ୍ଧରେ ଖାରବେଳ ଯୁଦ୍ଧ କରିବାକୁ ଆସିଛନ୍ତି ବୋଲି ଶୁଣିବାରୁ ସେଠାକାର ସମସ୍ତେ ଆନନ୍ଦିତ ହେଲେ । ତାଙ୍କୁ ସବୁ ପ୍ରକାର ସାହାଯ୍ୟ ଦେବେ-

ବୋଲି ମଧ୍ୟ କହୁଥିଲେ । ବୁଢ଼ା ପଧାନ ତାଙ୍କୁ ଖୁବ୍ ସମ୍ମାନ ଦେଖାଇ ଛାଉଣୀ ଭିତରେ ବନ୍ଦୋବସ୍ତ କରିଦେଲେ ।

ଦିନେ ସଂଧ୍ୟାବେଳେ ନଈ କୂଳକୁ ଶିକାର ପାଇଁ ଯାଇଥାନ୍ତି । ଧୃଷି ସେତେବେଳକୁ ଦଳେ ବାଳକାଙ୍କ ସହିତ ପୋଠାକୁ ଖେଳିବାକୁ ଯାଇଥିଲେ । ତାଙ୍କର ରୂପ, ଚାଲିଚଳନ, ଅନ୍ୟ ବାଳକାଙ୍କ ଅପେକ୍ଷା ସମ୍ପୂର୍ଣ୍ଣ ଅଲଗା ଥିଲା । ଖାରବେଳଙ୍କର ସନ୍ଦେହ ହେଲା ଏ' କୌଣସି ରାଜକନ୍ୟା...

ଖାରବେଳ ଧୃଷିଙ୍କୁ ଦେଖି ମୋହିତ ହୋଇଗଲେ । ଧୃଷି ମଧ୍ୟ ଖାରବେଳଙ୍କ ପୁରୁଷତ୍ୱ ଏବଂ ବଳିଷ୍ଠ ଚେହେରା ଦେଖି ତାଙ୍କୁ ଭୁଲିପାରିଲେ ନାହିଁ । ଖାରବେଳଙ୍କ ମନ ସେହି ଅନନ୍ୟରୂପସୀ ଧୃଷିଙ୍କ ନିକଟରେ ଲାଗି ରହିଲା । ମନ କଥା ମନରେ ଥାଏ ।

ଅଳ୍ପଦିନ ପରେ ଯୁଦ୍ଧ ଆରମ୍ଭ ହେଲା । ପଟଳ ସୈନ୍ୟମାନେ ଉତ୍କଳୀୟ ସୈନ୍ୟଙ୍କ ସଙ୍ଗେ ଯୋଗଦେଲେ । ଧୃଷି ବି ଆଗରୁ ଯୁଦ୍ଧବିଦ୍ୟା ଶିକ୍ଷା କରିଥିଲେ । ସେ ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନା । ଏହି ଯୁଦ୍ଧରେ ଯୋଗଦେବା ପାଇଁ ତାଙ୍କର ମନ ବଳିଲା ; କାରଣ ଖାରବେଳଙ୍କୁ ଦେଖିବା ପରଠାରୁ ସେ ଏକରକମ ବାଘୁଣୀ ହୋଇଯାଇଥିଲେ ; ତେଣୁ ତାଙ୍କର

ରକ୍ଷକ ବୁଢ଼ା ପଧାନ ଠାରୁ ଅନୁମତି ନେଇ ସେ ଯୁବକ ବେଶରେ ପଟ୍ଟଲ ସୈନ୍ୟମାନଙ୍କ ନେତୃତ୍ୱ ନେଲେ ।

ପଟ୍ଟଲର ସେନାଦଳ ବୀରଦର୍ପରେ ବାହାରିଲେ । ଧୂଷି ମଧ୍ୟ ଦିବ୍ୟପୁରୁଷ ବେଶରେ ବଜିର ରାଜ୍ୟର ଯୁବରାଜ ବୋଲି ପରିଚୟ ଦେଇ ସେନାପତିରୂପେ ଖାରବେଳଙ୍କ ସଙ୍ଗେ ମିଶିଲେ ।

ଘମାଘୋଟ ଯୁଦ୍ଧ ଆରମ୍ଭ ହେଲା । ଡିମେଟ୍ରିଅସ ଭାବୁଥିଲେ ଉତ୍କଳର ସୈନ୍ୟମାନଙ୍କୁ ସହଜରେ ପରାସ୍ତ କରିଦେଇ ପାରିବେ କିନ୍ତୁ ଫଳ ହେଲା ଓଲଟା । କଳିଙ୍ଗ ସେନାଙ୍କ ପ୍ରଚଣ୍ଡ ଆକ୍ରମଣରେ ବକ୍ଟ୍ରିୟା ସୈନ୍ୟମାନେ, ଭୀତିତ୍ରସ୍ତ ହୋଇପଡ଼ିଲେ । ଗୋଟାଏ ପାଖରେ ଖାରବେଳ, ଅନ୍ୟ ପାଖରେ ଧୂଷି ରଣ କୌଶଳକ୍ରମେ ବକ୍ଟ୍ରିୟାର ସୈନ୍ୟମାନଙ୍କୁ ନିପାତ କଲେ । ଡିମୋଟ୍ରିଅସ୍ ଶେଷରେ ଖାରବେଳଙ୍କ ନିକଟରେ ମୁଣ୍ଡ ନୁଆଁଇଲେ ।

ଧୂଷି ସେନାପତି ବେଶରେ ଖାରବେଳଙ୍କ ସହିତ ମିଶି ଯୁଦ୍ଧ କଲାବେଳେ ତାଙ୍କର ପ୍ରବଳ ପରାକ୍ରମ ଓ ସାହସ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ଚକିତ ହୋଇଥିଲେ । ଖାରବେଳଙ୍କୁ ସେ ଖୁବ୍ ସାବଧାନତା ସହକାରେ ପ୍ରତ୍ୟେକ ଦିଗରୁ ରକ୍ଷା କରୁଥାନ୍ତି । ଖାରବେଳ ତାଙ୍କୁ ଧୂଷିବୋଲି ଆଦୌ ଚିହ୍ନିପାରି

ନ ଥାନ୍ତି, ପରେ ସେ ଶକ୍ତି ପାଇ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ନିଜ ମନର କଥା କହିଲେ । ପଟଳର ସେନାପତି ଏଇ ଋଷି ବୋଲି ଜାଣିବା ପରେ ତାଙ୍କର ଆନନ୍ଦର ସୀମା ରହିଲା ନାହିଁ ।

ବୁଢ଼ା ପଧାନ ସବୁ ଶୁଣିଲେ । ଖାରବେଳଙ୍କ ଆଗ୍ରହ ଓ ଋଷିଙ୍କର ଆକାଂକ୍ଷା ଅନୁଯାୟୀ ସୁଧିଙ୍କର ବିବାହ ହେଲା ତାପରେ ସେ ଋଷିଙ୍କୁ ସାଙ୍ଗରେ ନେଇ ନିଜ ରାଜ୍ୟକୁ ବାହୁଡ଼ିଲେ ।

କେବଳ ଦିଗ୍‌ବିଜୟ କରି ଖାରବେଳ ନିଜର ଗୌରବ ବୃଦ୍ଧି କରି ନ ଥିଲେ । ନିଜ ଦେଶର ପ୍ରଜାମାନଙ୍କ ସକାଶେ ସେ ବହୁ ହିତ କାର୍ଯ୍ୟରେ ମଧ୍ୟ ମନ ଦେଇଥିଲେ । ସେ ଦାନୀ ଏବଂ ଦୟାଳୁ ପୁରୁଷ ମଧ୍ୟ ଥିଲେ ।

ଦୁଃଖୀ ଦରିଦ୍ରଙ୍କୁ ସେ ବିଭିନ୍ନ ଅନୁଷ୍ଠାନ ଆଦି ନିର୍ମାଣ କରି ସାହାଯ୍ୟ ପ୍ରଦାନ କରୁଥିଲେ । ସ୍ଥାନେ ସ୍ଥାନେ ବାଟୋଇଙ୍କ ପାଇଁ ଧର୍ମଶାଳା ସ୍ଥାପନ କରିଥିଲେ । ଧର୍ମ ପାଇଁ ସେ କାହାକୁ ବାଧ୍ୟ କରାଇ କିଛି କରୁ ନ ଥିଲେ । ପ୍ରଜାମାନଙ୍କର ଧର୍ମକୁ ସେ ବହୁ ସମ୍ମାନ ଦେଉଥିଲେ । ନିଜ ଅଭିଷେକକୁ

ମଧ୍ୟ ସେ ଜୈନମତ ଅନୁସାରେ ନ କରାଇ ହିନ୍ଦୁଧର୍ମର ବୈଦିକ ପ୍ରଥା ଅନୁସାରେ କରାଇଥିଲେ ।

କଳିଙ୍ଗର ପ୍ରଥମ ରାଜା କେତୁଭଦ୍ରଙ୍କୁ ସମ୍ମାନ ଦେଖାଇବା ପାଇଁ ସେ ତାଙ୍କ ମୂର୍ତ୍ତି ଗଢ଼ି ରାଜ୍ୟରେ ଏକ ଯାତ୍ରା ଆରମ୍ଭ କରାଇଥିଲେ । କୃଷିର ଉନ୍ନତି ସକାଶେ ଦେଶର ବିଭିନ୍ନ ସ୍ଥାନରେ କୂଅ, ପୋଖରୀ ଓ କେନାଲ ଆଦି ସେ ଖୋଳାଇଥିଲେ ।

ବଣ ପାହାଡ଼ର ପଥର ଦେହରେ ଖାରବେଳ ତାଙ୍କ ସମୟର ବହୁ ଘଟଣା ଲେଖିଯାଇଛନ୍ତି । ଖଣ୍ଡଗିରିର ହାତୀଗୁମ୍ଫାରୁ ତାଙ୍କ ରାଜତ୍ୱ କାଳର ବହୁକଥା ଜଣାପଡ଼ିଥାଏ ।

ସେ ଖୁବ ସଂଗୀତପ୍ରିୟ ଥିଲେ । ପ୍ରଜାମାନଙ୍କର ଆନନ୍ଦ ସକାଶେ, ସେମାନଙ୍କର ବିବିଧ ଉନ୍ନତି ନିମନ୍ତେ ସେ ବହୁ ମଠ, ଧର୍ମ ଅନୁଷ୍ଠାନ ଆଦି ନିର୍ମାଣ କରାଇଥିଲେ । ବହୁ ରାଜ୍ୟ ଜୟ କରି, ଅତୁଳନୀୟ ଧନ ସଂପଦର ଅଧିକାରୀ ହୋଇ ସମ୍ରାଟ ଖାରବେଳ ଶେଷରେ ସନ୍ନ୍ୟାସୀ ହୋଇଥିଲେ । ତାଙ୍କ ସଙ୍ଗେ ମହାରାଣୀ ଧୂଷି ମଧ୍ୟ ଜୀବନର ସମସ୍ତ ଭୋଗବିଳାସ ଛାଡ଼ି ସନ୍ନ୍ୟାସିନୀ ସାଜିଥିଲେ ।

ଖାରବେଲଙ୍କ ବୟସ ସେତେବେଳକୁ ମାତ୍ର ୩୭ ବର୍ଷ । ଏତେ କମ୍ ବୟସରେ ସେ ଯେଉଁ ବୀରତ୍ୱ, ସାମ୍ରାଜ୍ୟ ଶାସନର ଆଦର୍ଶ ହୃତକର କାର୍ଯ୍ୟ ଆଦି କରିଯାଇଛନ୍ତି ତାହା ଅତି ବିଚିତ୍ର ଏବଂ ବ୍ୟତିକ୍ରମ ।

ସନ୍ନ୍ୟାସୀ ହେବାପରେ ଖାରବେଳ ତାଙ୍କର ଶେଷ ଜୀବନ ଉଦୟଗିରିଠାରେ କଟାଇଥିଲେ । ବର୍ତ୍ତମାନ ଖଣ୍ଡଗିରି ଓ ଉଦୟଗିରିଠାରେ ଯେଉଁସବୁ ଗୁମ୍ଫା ଓ ଦେବତା ଅଛନ୍ତି, ସେସବୁ ତାଙ୍କରି ସମୟରେ ପ୍ରତିଷ୍ଠିତ । ସେଠାରେ ଥିବା ରାଣୀହଂସପୁର ଓ ଆଉ କେତୋଟି ଗୁମ୍ଫାରେ ରାଜାରାଣୀ ଦୁହେଁ ରହୁଥିଲେ ।

ପୁରାଣ ଯୁଗର ରାଜର୍ଷି ଜନକଙ୍କ ସଦୃଶ ସମ୍ରାଟ୍ ଖାରବେଳ ମଧ୍ୟ ଦେବଗୁଣରେ ଭୂଷିତ ଥିଲେ । ତାଙ୍କର ଯଶ ମହିମା, ତ୍ୟାଗ ଓ ବୀରତ୍ୱର କାହାଣୀ ଶୁଣିଲେ ଆଶ୍ଚର୍ଯ୍ୟ ଚକିତ ହେବାକୁ ପଡ଼ିଥାଏ । ସମଗ୍ର ଭାରତର ରାଜଚକ୍ରବର୍ତ୍ତୀ ହେବାପରେ ମଧ୍ୟ ସେ ଖୁବ୍ କମ୍ ବୟସରେ ସନ୍ନ୍ୟାସ ଆଶ୍ରମକୁ ଆଗ୍ରହ ସହ ଗ୍ରହଣ କରିଥିଲେ । ଧର୍ମ ପ୍ରତି ତାଙ୍କର ଆଗ୍ରହ ଓ ଅନୁରାଗ ଦେଖିଲେ ମଧ୍ୟ ବିସ୍ମିତ ହେବାକୁ ପଡ଼ିଥାଏ ।

ଏକୋଇଶି ଶହ ବର୍ଷ ତଳେ ସେହି ମହାନୀୟ ପୁରୁଷଙ୍କ ମରଶରୀର ଉତ୍କଳର ଏ ପବିତ୍ର ଭୂଇଁରେ ମିଶି ଯାଇଛି । ଆଜି ମଧ୍ୟ ତାଙ୍କର ଆଦର୍ଶ, ବୀରତ୍ୱ ଓ ଧର୍ମାନୁରାଗର କାହାଣୀ ଉତ୍କଳର ଶିଳା ଓ ଧୂଳିକଣାରେ ମିଶି ରହିଛି ।

